# ଆମ ଲୋକନାଚ

ଭାଗୀରଥି ନେପାକ



# ଆମ ଲୋକ ନାଟ

( ଦ୍ୱିତୀୟ ଭାଗ )

ଲେଖକ

ଶ୍ରୀ ଭଗୀରଥି ନେପାକ

ପ୍ରକାଶକ



କୋଣାର୍କ ପବ୍ଲିଶର୍ସ

ବିନୋଦବିହାରୀ, କଟକ-୨

# ଆମ ଲୋକ ନାଚ ( ୨ୟ ଭାଗ )

ଲେଖକ :

**ଶ୍ରୀ ଭଗୀରଥି ନେପାକ**

ପ୍ରକାଶକ :

ଚନ୍ଦ୍ରଶେଖର ପାଣ୍ଡ

**କୋଣାର୍କ ପବ୍ଲିଶର୍ସ,**

ବିନୋଦବିହାରୀ, କଟକ-୨

ପ୍ରଥମ ପ୍ରକାଶ : ୧୯୮୬

ମୁଦ୍ରଣ :

**କୋଣାର୍କ ପ୍ରିଣ୍ଟର୍ସ**

ଖଟବିନ୍ ସାହି, କଟକ-୮

ମୂଲ୍ୟ : **ଦୁଇଟଙ୍କା ପଚାଶ ପଇସା**

## ଏଥିରେ ଅଛି—





# ଡାପ୍ ନାଚ

ଢ଼ାପ୍ ନାଚ କନ୍ଧମାନଙ୍କର ଏକଗୁଟିଆ ନାଚ ।

ଓଡ଼ିଶାର ଫୁଲବାଣୀ, କଳାହାଣ୍ଡି, ବଲାଙ୍ଗୀର, ସମ୍ବଲପୁର ଓ ଗଞ୍ଜାମ ଅଞ୍ଚଳରେ କନ୍ଧମାନେ ବହୁଳ ସଂଖ୍ୟାରେ ରହନ୍ତି ।



ତେବେ ସବୁଠି ସବୁ କନ୍ଧ ଢ଼ାପ୍ ନାଚ ନାଚନ୍ତି ନାହିଁ । କଳାହାଣ୍ଡି ଓ କଳାହାଣ୍ଡି ପାଖର ବଲାଙ୍ଗୀର ଅଞ୍ଚଳରେ କନ୍ଧ-ମାନେ ଏ ନାଚ କରନ୍ତି । ଆଦିବାସୀ କନ୍ଧ ସମାଜର ଯୁବକ ଯୁବତୀମାନେ ଏ ନାଚରେ ଯୋଗ ଦେଇଥାନ୍ତି ।

ଏବେ କନ୍ଧ ସମାଜର ଢ଼ାପ୍ ନାଚ ଦେଖି, ଅନ୍ୟମାନେ ମଧ୍ୟ ଏ ନାଚ ନାଚିବାପାଇଁ ମନ ବଳେଇଛନ୍ତି । ଏଥିରୁ ଢ଼ାପ୍ ନାଚର ଆଦର କେତେ ଜାଣି ହୁଏ ।

## ଢାପ୍

ଢ଼ାପ ନାଚର ଢ଼ାପ୍, ବାଜା ବଜା ହୁଏ । 'ଢ଼ାପ୍' ବାଜା ବଜାଇ ଏ ନାଚ କରିଯାଉ ଥିବାରୁ ନାଚର ନାଁ ଢ଼ାପ୍ ନାଚ ।

ଢ଼ାପ୍ ବାଜା 'ଖଞ୍ଜଣି' ପରି । ଏହା ଏକମୁହାଁ ବାଜା । ଢ଼ାପ୍ କାଠରେ ଗୋଲ ହୋଇ ତିଆରି କରିଯାଇଥାଏ । ବଜାଇବା ପଟେ ଚମଡ଼ାର ଛାଉଣି ଥାଏ । ଖଞ୍ଜଣିକୁ ହାତରେ ବଜାଯାଏ । ଢ଼ାପକୁ କାଠିରେ ବଜାଯାଏ । ଢ଼ାପୁଆ (ଢ଼ାପ୍ ବାଦକ) ଏହାକୁ ବାଁ ହାତରେ ଧରି, ଡାହାଣ ହାତରେ କାଠରେ ବଜାଇଥାଏ । ଏଥିରୁ ଡପ୍ ଡପ୍ ହୋଇ ଗଭୀର ଶବ୍ଦ ବାହାରେ । ଖଞ୍ଜଣିରେ ଗିନି ଲାଗିଥାଏ । କିନ୍ତୁ ଢାପ୍‌ରେ ଗିନି ନ ଥାଏ । ଢ଼ାପୁଆ ଢ଼ାପ୍‌ରେ ଲାଗିଥିବା ମୋଟା ଚମଡ଼ା ଫିତାକୁ କାନ୍ଧରେ ଗଳାଏ ଓ ମୁହଁକୁ ପେଟ ଓ ଅଣ୍ଟା ପାଖରେ ସଜାଡ଼ି କରି ରଖି ବଜାଏ । ତେବେ ଫିତା ଲାଗି ନ ଥିବା ଢାପ୍ ପ୍ରାୟ ସମସ୍ତେ ବ୍ୟବହାର କରନ୍ତି ।

ବଲାଙ୍ଗୀର ଓ କଳାହାଣ୍ଡିର କନ୍ଧ ସମାଜ ଢ଼ାପ ନାଚକୁ ନିଜର ସାମାଜିକ ନାଚରୂପେ ଧରି ନେଇଛନ୍ତି । କନ୍ଧ ପୁଅ ଝିଅମାନେ ଢ଼ାପ୍ ନାଚ ନାଚିବାକୁ, ଢ଼ାପ୍ ବାଜା ବଜାଇବାକୁ ଆଗରୁ ତାଲିମ୍ ନିଅନ୍ତି ।

## ଗ୍ରମକାଠି

ଢ଼ାପ୍ ନାଚରେ ଢ଼ାପ୍ ସଙ୍ଗରେ 'ଗ୍ରମକାଠି' ବି ବଜାଯାଏ ।



ଗ୍ରମକାଠି ଦୁଇଟି ଚକଣ ଛୋଟ ଛୋଟ କାଠରେ ତିଆରି କରାଯାଇ ଥାଏ । ଏଥିରେ ଘୁଲ୍‌ଘୁଲ୍ (ଛୋଟ ଘାଗୁଡ଼ି) ବନ୍ଧା ଯାଇଥାଏ । କାଠକୁ କାଠ ପିଟି ବଜାଇଲାବେଳେ ଏଥିରୁ ସୁନ୍ଦର ଶବଦ ବାହାରେ ।

## ଢାପ୍ ନାଚର ସମୟ

ଢାପ୍ ବାଜା ସଙ୍ଗକୁ ଗ୍ରମକାଠି ବାଜା ବେଶ୍ ଜମିଯାଏ ।

ଢାପ୍ ନାଚର ସମୟ ହେଉଛି 'ଚଇତ୍ର ପରବ' ।

ଚଇତ ପରବ ଆଦିବାସୀ ସମାଜର ବଡ଼ ପରବ । ଆଦିବାସୀମାନେ ଏଇ ପରବକୁ ଜାକଜମକରେ ମନେଇଥାନ୍ତି । କିଏ କେତେ ମତେ ଚଇତ ପରବ ମନାଏ, ତାର ହିସାବ ନାହିଁ ।

ଏ ପରବ ଖୁସି ହେବାର ପରବ । ଜୀବନର ସବୁ ଦୁଃଖ, ହଟହଟା ଭୁଲି ହସିବାର ପରବ ।

ଚଇତ ପରବ ଆସିଲେ କଳାହାଣ୍ଡି ଓ ବଲାଙ୍ଗୀର ଅଞ୍ଚଳର କନ୍ଧ ପୁଅ ଝିଅମାନେ ଢ଼ାପ୍ ନାଚ ନାଚବାପାଇଁ ଉଚ୍ଛନ୍ନ ହୁଅନ୍ତି । ଢ଼ାପ୍ ନାଚର ଭୁଲଯାଇଥିବା ପଦମାନଙ୍କୁ ଗୁଣୁ ଗୁଣୁ କରି ଘୋଷି ହୁଅନ୍ତି । ସମସ୍ତେ ଦେଖି ନାଚବା ଶିଖନ୍ତି । ସୁବିଧା ଦେଖି ଗାଇବା ଶିଖନ୍ତି ।

ଢ଼ାପ୍ ନାଚ ଚଇତ ପରବକୁ ଅହୁରି ଉଷୁମ କରେ ।

ଢ଼ାପ୍ ନାଚ ଦେଖିବା ଲୋକକୁ, ଗାଇବା ଲୋକକୁ, ନାଚବା ଲୋକକୁ ମତୁଆଳ କରେ ।

ଢ଼ାପ୍ ନାଚ ଖାଲି ଚଇତ ପରବରେ ହୁଏ ନାହିଁ । ପୁଅ ଝିଅଙ୍କର ବାହାଘର ବେଳେ ଓ ଅନ୍ୟ ଦିନ ମଉଜ କରିବାକୁ ମନ ହେଲେ ଢ଼ାପ୍ ନାଚ କରାଯାଏ ।

ଢ଼ାପ୍ ନାଚ ହସଖୁସିର ନାଚ । ଏହା କନ୍ଧ ପୁଅ ଝିଅଙ୍କର ଆନନ୍ଦ ମଉଚ୍ଛବର ନାଚ ।

## ଢାପ୍ ନାଚର ବେଶପୋଷାକ

ଅନ୍ୟ ନାଚ ପରି ଢ଼ାପ୍ ନାଚରେ ଅଲଗା ବେଶପୋଷାକ ଲୋଡ଼ା ନାହିଁ ।

କନ୍ଧ ପୁଅମାନେ ସବୁଦିନଆ ଧୋତି ପିନ୍ଧନ୍ତି । କନ୍ଧ ଝିଅମାନେ ବ' ନିତିଦିନିଆ ଶାଢ଼ୀ ପିନ୍ଧି ନାଚନ୍ତି । ତେବେ ନାଚିବା ଆଗରୁ ପୁଅ ଝିଅମାନେ ମୁଣ୍ଡରେ ଟିକିଏ ଅଧିକା ତେଲ ଲଗାଇ କୁଣ୍ଡେଇ ହୁଅନ୍ତି । ଝିଅମାନେ ଖୋସାକୁ ବାଟେଇ କରି ଖୋସିଥା'ନ୍ତି । ଖୋସାକୁ ବଣୁଆ ଫୁଲଗଛି ମହକୁଥାଏ । ଛୋଟ ଛୋଟ ଧୋତି ଛୋଟ ଛୋଟ ଶାଢ଼ୀ କନ୍ଧ ପୁଅ ଝିଅଙ୍କର କଳାକଳା ଦେହକୁ ଚହଟାଇ ଦେଉଥାଏ ।

ନାଚିବାବେଳେ ପୁଅ ଝିଅମାନେ ଭୋଳ ହୋଇ ଯାଆନ୍ତି । ଦେହର ଲୁଗା ଆଡ଼େ ଧ୍ୟାନ ନ ଥାଏ । କନ୍ଧ ଝିଅର ଖୋସା ହୁଗୁଳା ହୁଏ । ତା' ଖୋସାର ଫୁଲଗଛି ତଳେ ଲୋଟେ । ତଥାପି ସେ ନାଚିବାରୁ ବିରତ ହୁଏ ନାହିଁ ।

କନ୍ଧ ପୁଅ ଝିଅମାନେ ନାଚରେ, ଗୀତରେ ନିଜ ନିଜକୁ ହଜାଇ ଦିଅନ୍ତି ।

କନ୍ଧ ପୁଅ ଝିଅଙ୍କର ନାଚ ବି ବେଶ ହୁଏ ।

## ଢାପ୍ ନାଚ

କନ୍ଧଗାନେ ଗାଁ ମୁଣ୍ଡରେ ବା ଗାଁର ମଝି ଦାଣ୍ଡରେ ଢାପ୍ ନାଚ କରନ୍ତି ।

ଢାପ୍ ନାଚରେ ବେଲା ଘଡ଼ି ଆଗରୁ କିଣା ହୋଇ ଦିଆଯାଇ-ଥାଏ । କନ୍ଧ ପୁଅ ଝିଅମାନେ ସେହି ବେଲା ଘଡ଼ିକୁ ଜଗି

ରହିଥାନ୍ତି । ଢ଼ାପ୍ ବାଜା ବାଜିଲେ, ପୁଅ ଝିଅମାନେ ନାଚିବାପାଇଁ ବାହାରି ଆସନ୍ତି । ସେମାନେ ଆଗେ ଧାଡ଼ିକରି ଠିଆ ହୁଅନ୍ତି । ପୁଅମାନେ ଗୋଟିଏ ଧାଡ଼ିରେ ଓ ଝିଅମାନେ ଆଉ ଗୋଟିଏ ଧାଡ଼ିରେ ମୁହାଁମୁହିଁ ହୋଇ ଛିଡ଼ା ହୋଇ ଯାଆନ୍ତି ।

ତାପରେ ଢ଼ାପ୍ ବାଜା ବାଜି ଉଠେ ।

ପୁଅମାନେ ନାଚି ନାଚି ଗୋଡ଼ିରପାଦ ଆଗେଇ ଗଲାବେଳେ ଝିଅମାନେ ସେହି ଗୋଡ଼ିରପାଦ ନାଚି ନାଚି ପଛେଇ ଯାଆନ୍ତି । ଏହିପରି ଭାବରେ ମୁହାଁମୁହିଁ ହୋଇ ନାଚନ୍ତି ।

ନାଚିଲାବେଳେ ଦେହ ଦୋହଲାଇ ଆଗପଛ କରନ୍ତି ।

ପରେ ପରେ ଦୁଇଧାଡ଼ି ମିଶି ଗୋଟିଏ ଧାଡ଼ି ହୁଏ । ପୁଅ ଝିଅମାନେ ଏକାଠି ଗୋଟିଏ ଧାଡ଼ିକରି ନାଚନ୍ତି । ସେତେବେଳେ ହାତକୁ ହାତ, ଅଣ୍ଟାକୁ ଅଣ୍ଟା ବା କାନ୍ଧକୁ କାନ୍ଧ ଧରାଧରି ହୋଇ, ନଇଁ ନଇଁ ନାଚନ୍ତି । ଏ ଦୃଶ୍ୟ ଦେଖିବାକୁ ଭାରି ଭଲ ଲାଗେ । ଦେଖଣାହାରୀମାନେ ଏହା ଦେଖି ମୋହିତ ହୁଅନ୍ତି ।

ବନ ପାହାଡ଼ ଘେରା ଛୋଟ ଛୋଟ କନ୍ଧ ଗାଁ ଢ଼ାପ୍ ବାଜା, ଢ଼ାପ ନାଚ, ଢ଼ାପ୍ ଗୀତରେ ବୁଡ଼ିଯାଏ ।

ଢ଼ାପ୍ ଗୀତ ସଙ୍ଗରେ ଢ଼ାପ୍ ବାଜା ବି ବାଜେ । ଢ଼ାପ୍ ବାଜାର ତାଳ ସଙ୍ଗରେ ତାଳ ଦେଇ କନ୍ଧ ପୁଅ ଝିଅମାନେ ନାଚୁଥାଆନ୍ତି ।

ଜହ୍ନ ରାତିରେ ଢ଼ାପ୍ ନାଚ ଖୁବ୍ ଜମେ । ବେଳେ ବେଳେ କନ୍ଧ ପୁଅ ଝିଅଙ୍କ ଭିତରେ ଢ଼ାପ୍ ନାଚର ପ୍ରତିଯୋଗିତା ହୁଏ ।

ପୁଅ ଝିଅମାନେ ଗୀତରେ, ନାଚରେ ଆରଦଳକୁ ହଟାଇବାପାଇଁ ବଳ କଷାକଷି କରନ୍ତି । ଏହିପରି ଭାବରେ ରାତି ପାହେ । ପୁଅ ଝିଅଙ୍କର ସମୟର ଜ୍ଞାନ ରହେ ନାହିଁ ।

## ଢାପ୍ ନାଚୁଆ ନାଚୁଣୀ

ଢ଼ାପ ନାଚରେ ସାଧାରଣତଃ କନ୍ଧଯୁବକ ଓ କନ୍ଧଯୁବତୀ-ମାନେ ଭାଗ ନେଇଥାନ୍ତି । ଏମାନେ ସମସ୍ତେ ଅବିବାହିତ ।



ବିବାହିତ ପୁରୁଷ ଓ ସ୍ତ୍ରୀମାନେ ଅବିବାହିତ ଯୁବକ ଯୁବତୀ-ମାନଙ୍କୁ ଢ଼ାପ୍ ନାଚ, ଢ଼ାପ୍ ଗୀତ ଶିଖାଇଥାନ୍ତି ।

ଗୋଟିଏ ଗାଁର କନ୍ଧ ଯୁବକ ଯୁବତୀମାନେ ଏକାଠି ସାଙ୍ଗ ହୋଇ ନାଚନ୍ତି । ଭିନ୍ନ ଗାଁର ଯୁବକମାନେ ଅନ୍ୟ ଗାଁର ଯୁବତୀମାନଙ୍କ ସଙ୍ଗରେ ନାଚନ୍ତି । ତେଣୁ ଢ଼ାପ୍ ନାଚ ନାଚିବାପାଇଁ ବିଭିନ୍ନ ଗାଁରୁ ଯୁବକ ଯୁବତୀମାନେ ଆସି ଏକାଠି ହୁଅନ୍ତି ।

ଢ଼ାପ୍ ନାଚ ଅଲଗା ଅଲଗା ଗାଁର ଯୁବକ ଯୁବତୀମାନଙ୍କୁ ଏକାଠି ହେବା ପାଇଁ ସୁବିଧା ସୁଯୋଗ ଦିଏ । ଏମିତି ଏକାଠି ସାଙ୍ଗ ହୋଇ ନାଚ ନାଚି ଯୁବକ ତାର ମନ ପସନ୍ଦ ଯୁବତୀକୁ ବାଛିନିଏ । ଯୁବତୀର ମନ ମାନିଲେ ସେହି ଯୁବକକୁ ଆଦରି ଯାଏ ।

ତାପରେ ଦୁହେଁ ଦୁହିଁଙ୍କୁ ଦେଖି ହସନ୍ତି, ଦୁହେଁ ହାତ ଧରାଧରି ହୋଇ ନାଚନ୍ତି । ଦୁହେଁ ଦୁହିଁଙ୍କ ନାଁ ଯୋଡ଼ି ଗୀତ ଗାଆନ୍ତି । ନାଚରୁ, ଗୀତରୁ ଭାବ ଜମେ । ଭାବ ଗଭୀର ହୋଇ ବିବାହରେ ପରିଣତ ହୁଏ ।

ନିଜ ଗୋତ୍ରରେ କନ୍ଧମାନେ ବିବାହ କରନ୍ତି ନାହିଁ । ଗୋଟିଏ ଗାଁରେ ପ୍ରାୟ ଗୋଟିଏ ଗୋତ୍ରର କନ୍ଧମାନେ ରହନ୍ତି । ତେଣୁ ସେହି ଗାଁର ଯୁବକ ଯୁବତୀମାନେ ଏକାଠି ନାଚିବା ମନା ।

ପୁଣି ଢ଼ାପ୍ ନାଚର ଅଧିକାଂଶ ଗୀତ ପ୍ରେମଗୀତ । ସେ ଗୀତ ଗାଁର ଭଉଣୀ ଆଗରେ ଗାଇବା ଭଲ କଥା ନୁହେଁ । ସେଥିପାଇଁ ଗାଁର ଯୁବକ ଯୁବତୀମାନେ ଏକାଠି ନାଚିବାକୁ କନ୍ଧ ସମାଜ ବାରଣ କରେ । କିନ୍ତୁ ଦେଖଣାହାରୀ ହେବାରେ ମନା ନାହିଁ ।

# ଢାପ୍ ଗୀତ

ଢାପ୍ ଗୀତ ଆରମ୍ଭ ହୁଏ ଗାଁର ଦେବୀଙ୍କ ଲାଗି । ଯୁବକ ଯୁବତୀ ଗାଆନ୍ତି—

"କୁହାର ଗୋ ମାଁ ଝାଙ୍କୁରୀ ବୁଢ଼ୀ
ଦେଶ ମୁଡ଼େ ତୋର ଗୁଡ଼ୁ ।
ତତେ ଅଙ୍ଗର ରକ୍ତ କାଢ଼ି ଦେବାସ୍
ମକେ ପଦ୍ ଆସୁ ଯୁଡ଼ୁ ଯୁଡ଼୍ ।"

ଏହାପରେ ଢାପ୍ ନାଚୁଥିବା ଯୁବକ ଯୁବତୀମାନେ ଆଗ ପଛରେ ଓ ମିଳିତ ଭାବରେ ଢାପ୍ ଗୀତ ଗାଆନ୍ତି ।

ଢାପ୍ ଗୀତ ଢାପ୍ ନାଚ ପରି ମିଳିତ ଗୀତ । ବହୁ ଲୋକ ଏକାଠି ନାଚନ୍ତି ପରି ବହୁ ଲୋକ ଏକାଠି ଗାଆନ୍ତି ।

ଏଥିରେ ନିର୍ଦ୍ଦିଷ୍ଟ ରାଗ ରାଗିଣୀ, ଭାଷା କି ଛନ୍ଦ ନ ଥାଏ । ଅନେକ ପ୍ରକାର ରାଗ ଓ ଛନ୍ଦରେ ଗୀତ ଗାନ କରାଯାଏ ।

ଗୀତରେ ପ୍ରଶ୍ନ ଉତ୍ତର ଚାଲେ । ଗୀତରେ ନଈ, ବନ, ଝରଣା, ପାହାଡ଼ ଓ ସମାଜ କଥା ପଡ଼େ ।

ପରେ ପରେ ଯୁବକ ଯୁବତୀମାନେ ପ୍ରେମ ଗୀତ ଗାଆନ୍ତି । ଜଣେ ଅନ୍ୟ ଜଣକ ନାଆଁରେ ଗୀତ ଯୋଡ଼ି ଗାଏ । ଜୀବନକୁ ସରସ, ମଧୁର କରିବାପାଇଁ ଗୀତ ସବୁ ବନ୍ଧା ହୋଇଥାଏ । କେତେକ ଗୀତରେ ଜୀବନ ଚିନ୍ତା ବି ଥାଏ ।

ଜୀବନ ଚିନ୍ତା ଥିବା ଗୀତର ନମୁନା—

"ସଙ୍ଗାତେ ମାଇ ମାଗୁଇର ବେକ
ସୁଖ ଦୁଃଖର କଥା ହେମା
ମୁଦ୍ଦର ଗଉଁଆ ରଖ ।
ଆଷାଢ଼ ମାସର କଁଆ
ଇ' ସଂସାରେ ସୁଖ୍ ଜାଇଛେ
ଅଛେ ଖାଲି ଦଁଆ ନଆ ।"

ବେଳେ ବେଳେ ଅର୍ଥ ବୁଝାପଡୁ ନ ଥିବା ଘୋଷା ପଦକୁ ବାରମ୍ବାର ଦୋହରାଯାଏ । ମନେହୁଏ, ଯୁବକ ଯୁବତୀମାନେ ଏଥିରେ ସେମାନଙ୍କ ଝିଅଲୀ ମନକୁ କାଢ଼ି ଦିଅନ୍ତି । ସେଥିରୁ ଗୋଟିଏ ପଦ ହେଲା—

"ତେଡ଼ବୋ କରବୋ ରେବୋ ରେ ବୋ
ରେବୋ ରେ ମୋର୍ କାରୁ ଘାଏନ୍
କାରୁ ଘାଏନ୍ କେ ସିନ୍ଦୁରା ଖେଲ ଖେଲେଇଲା
ଏହୋ ଅଖିଆ ମଦେ ମନ୍ ଭରଲା ।"

ଗୀତ ମଝିରେ ହସ, ଆଖିମରା, ହାତଚିପା ସବୁ ଚାଲେ ।

ଯୁବକ ଗୋଟିଏ ଝିଅ ଉପରେ ଆଖି ରଖି ଗାଏ—

"ସିଲ୍ ଖଡ଼୍‌କା ଝିପାରେ
ବେନ୍ ପିଠ୍‌ବେ ନଲ ।

କହଲେ ଦଲ କହରେ ଦରେ ଶାଲୀ ଲକେ
ଛଡ଼ଆ ବାଡ଼ିମାର୍ ଦହନା ।"

ଯୁବତୀଟି ଯୁବକଙ୍କୁ ଉତ୍ତର ଦେଇ ଗାଏ—

"ହୁଡ଼ୁଆ ବାଡ଼ ନା ମାର୍ ନା ମତେ
କୁଣ୍ଡା ଯୁଖା ରାନ୍ଧି ଦିବସ୍ ତତେ ।"

ଏହିପରି ଭାବରେ ଗୀତ ଗଢ଼ୁଥିଲେ । ପ୍ରେମ, ବିବାହ, ଘରକରଣା, ରୀତିନୀତି ଉପରେ ଗୀତ ବୋଲାହୁଏ ।

ଛାପ୍ ଗୀତ ପୋଥି ପୁରାଣରେ ମିଳେ ନାହିଁ । କନ୍ଧ ସମାଜର କେଉଁ ଏକ ଅଜଣା ଲୋକଜଣେ ହିଁ ଏହାର ରଚୟିତା । କେହି ସେ କବିର ନାଁ ମନେ ରଖି ନାହାଁନ୍ତି । ଲୋକ ମୁଖରେ ତାର ଗୀତ ଜୀଇଁଛି । ସେ ଗୀତର ଆୟୁଷ କେତେ କିଏ କହିବ ?



# ଘୁମୁରା ନାଚ

ଭାଦ୍ରବ ମାସ ଆସିଲେ, ପଶ୍ଚିମ ଓଡ଼ିଶାରେ 'ନୂଆଖାଇ' ପରବ ପଡ଼େ । ଘରେ ଘରେ, ପୁରେ ପୁରେ, 'ନୂଆଖାଇ' ପାଇଁ ସଜବାଜ ଆରମ୍ଭ ହୁଏ ।



ନୂଆଖାଇ ପରବକୁ ସରସ ସୁନ୍ଦର କରିବା ପାଇଁ ଓଡ଼ିଶାର କଳାହାଣ୍ଡି ଜିଲ୍ଲାରେ ଘୁମୁରା ନାଚର ଆୟୋଜନ ହୁଏ ।

କଳାହାଣ୍ଡି ଜିଲ୍ଲାରେ ଏପରି ଗାଁ ନାହିଁ, ଯେଉଁଠି ଘୁମୁରା ନାଚ ଦଳ ନାହାନ୍ତି । ଗୋଟିଏ ଗୋଟିଏ ଗାଁରେ ଦୁଇ ତିନୋଟି

ଘୁମୁରା ନାଚ ଦଳ ଆଆନ୍ତି । ନୂଆଖାଇ ଆଗରୁ ଏମାନେ ନିଜ ନିଜର ଘୁମୁରା ବାଜା ସଜାଇବାରେ ଲାଗି ଯାଆନ୍ତି । ନାଚର ପୋଷାକପତ୍ର ଝାଡ଼ିଝୁଡ଼ି ସଫାକରି ରଖନ୍ତି । ନୂଆଖାଇ ପରଦିନ କଳାହାଣ୍ଡିର ଗାଁ ଗହଳରେ ଘୁମୁରା ନାଚ ଆରମ୍ଭ ହୋଇଯାଏ । ଏହା ଅଶିଣ ମାସର ଦଶହରା ଯାଏ ଚାଲେ ।

## ଘୁମୁରା

ଘୁମୁରା ନାଚରେ ଘୁମୁରା ବାଜା ବଜା ହେଉଥିବାରୁ ନାଚର ନାଁ ଘୁମୁରା ନାଚ । ସେହିପରି ଏହି ନାଚରେ ଯେଉଁ ଗୀତ ବୋଲାଯାଏ ତାକୁ ବି ଘୁମୁରା ଗୀତ କୁହାଯାଏ ।

ଘୁମୁରା ବଜାଉଥିବା କଳାକାରଙ୍କୁ ସ୍ଥାନୀୟ ଭାଷାରେ 'ଘୁମୁରୁଡ଼' କୁହାଯାଏ ।

ଘୁମୁରା ବାଜା ଦେଖିବାକୁ ମାଟି ସୁରେଇ ପରି । ଏହା ମଧ୍ୟ ମାଟିରେ ତିଆରି ହୁଏ । ମୁହଁଭାଗ ସରୁ । ସରୁ ମୁହଁରେ ଗୋଧି ଚମଡ଼ାର ଛାଉଣି ଥାଏ । ବାଜାବାଲା 'ଘୁମୁରା'କୁ ଛାତି ଆଗରେ ରଖି ତାକୁ କାନ୍ଧ ଓ ଅଣ୍ଟା ସଙ୍ଗରେ ଭିଡ଼ି ବାନ୍ଧି ରଖିଥାନ୍ତି । ନାଚିଲାବେଳେ କି ବଜାଇଲାବେଳେ ଏହା ମୋଟେ ହେଲେ ହଲଚଲ ହୁଏ ନାହିଁ ।

ସୁରେଇ ପରି ଦେଖାଯାଉଥିବା ଘୁମୁରାର ସରୁ ମୁହଁରେ ଗୋଧି ଚମଡ଼ାର ଛାଉଣି ଥାଏ । ଚମଡ଼ା ଛାଉଣୀକୁ ସବୁଆଡ଼ୁ

ମାଟିପାତ୍ର ସଙ୍ଗରେ ଝେଣ୍ଟ ଚମ ଦଉଡ଼ିରେ ଭିଡ଼ା ଯାଇଥାଏ । ତମ୍ବୁରୁ ପରି ଏହାର ଭିତର ଅଂଶ ପୋଲା । ବାଜାବାଲା ହାତରେ ଏହାକୁ ବଜାଇଲେ 'ଘୁମ୍_ଘୁମ୍' ଶବ୍ଦ ବାହାରେ ।

## ଘୁମୁରା ବାଜାବାଲା

ଘୁମୁରା ନାଚରେ ଅନେକ ଘୁମୁରା ବାଜାବାଲା ମିଶିଥାନ୍ତି । ସେମାନେ ସମସ୍ତେ ଏକପ୍ରକାର ପୋଷାକ ପିନ୍ଧିଥାନ୍ତି । ଏମାନେ ସମସ୍ତେ ଛପା ପାଇଜାମା ପିନ୍ଧନ୍ତି । ସମସ୍ତଙ୍କ ମୁଣ୍ଡରେ ବଡ଼ ବଡ଼ ପାଗ ଥାଏ । ପାଗରେ 'କଲଗି ଝୁମ୍ପା' ଲାଗିଥାଏ । କଲଗି ଝୁମ୍ପାରେ 'ଗୋଟି' ଖଞ୍ଜା ଯାଇଥାଏ । ନାଚିଲାବେଳେ ଲମ୍ବା ଘାସ ଫୁଲ ପରି ଝୁମ୍ପାମାନ ତଳ ଉପର ହୋଇ ଦୋହଲୁଥାଏ । ଏହା ଘୁମୁରା ନାଚର ଶୋଭା ବଢ଼ାଏ ।

ଖାଲି ସେତିକି ନୁହେଁ, ବାଜାବାଲାମାନେ କପାଳରେ ଲମ୍ବ ସିନ୍ଦୁର ଟିକା ମାରିଥାନ୍ତି । ନାଚିଲାବେଳେ ବୀର ଗୁହାଣୀରେ ଗୁହାନ୍ତି । ଗୁହଲାବେଳେ ବୀରଦର୍ପରେ ପାଦ ପକାନ୍ତି ।

## ନିଶାଣ ବାଜାବାଲା

ଘୁମୁରା ନାଚରେ ନିଶାଣ ବାଜା ବି ବାଜେ । ନିଶାଣ ବାଜାବାଲାଙ୍କୁ ସ୍ଥାନୀୟ ଭାଷାରେ 'ନିଶାନିଆ' କୁହାଯାଏ ।

ନିଶାନିଆର ବେଶ ପୋଷାକ ଅଲଗା । ସେ ସାଧାରଣ ଧୋତି ପିନ୍ଧି ମାଲକଚ୍ଛା ମାରିଥାଏ ।



ଘୁମୁରା ନାଚ ସଙ୍ଗରେ ଘୁମୁରା ଓ ନିଶାଣ ବାଜେ । ଘୁମୁରା ଓ ନିଶାଣ ତାଳ ଉପରେ ଆଖି ରଖି ଘୁମୁରା ନାଚବାଲାମାନେ ନାଚନ୍ତି ।

## ଘୁମୁରା ନାଚ

ଘୁମୁରା ନାଚରେ କେବଳ ପୁରୁଷମାନେ ନାଚନ୍ତି । ଏ ନାଚରେ ସ୍ତ୍ରୀ ଲୋକଙ୍କର ହାତ ନାହିଁ । ସେମାନେ ଦେଖଣାହାରୀ ଭିତରେ ଯାଆନ୍ତି ।

'ଘୁମ୍‌ରୁଡି' ବା ଘୁମୁରା ବାଜାବାଲାମାନେ ଘୁମୁରା ବଜାଇ; ଆଗକୁ ପଛକୁ; ନଇଁ ନଇଁ ନାଚନ୍ତି । ଏହାପରେ ନାଚୁ ନାଚୁ ଘିରି ଘିରି ହୋଇ ଘୁରି ଘୁରି ବା' ନାଚନ୍ତି ।

'ଘୁମ୍ ରୁଭି'ମାନଙ୍କର ଏକା ଧରଣର, ଏକା ରଙ୍ଗର ବେଶପୋଷାକ ଘୁମୁରୁ ନାଚକୁ ଆହୁରି ସୁନ୍ଦର କରେ । ପାଗର କଲଙ୍ଗିଝୁମ୍ପା ନାଚୁଆର ଶୋଭା ବଢ଼ାଏ ।

ଘୁମୁରା ନାଚନ୍ଥିଆ (ନର୍ତ୍ତକ)ମାନେ 'ନିଶାଣ' ବଜାଉଥିବା ଲୋକକୁ ମଝିରେ ରଖି ଗୋଲାଇ ହୋଇ ନାଚନ୍ତି ।

ନିଶାଣିଆ ନିଶାଣ ବଜାଉ ବଜାଉ ନିଜେ ନାଚେ ଓ 'ଘୁମୁରୁଭି'ମାନଙ୍କୁ ନଚାଏ ।

ଘୁମୁରା ନାଚନ୍ଥିଆର ବୀର ଚାହାଣୀ ଓ ବୀର ଚାଲି ଦେଖିଲେ ମନେହୁଏ ଏହା ଏକ ବୀର ନାଚ ।

## ଘୁମୁରା ନାଚର ଗୀତ ଓ ଗାୟକ

ଘୁମୁରା ନାଚରେ ଜଣେ ବା ଦୁଇଜଣ ଗାୟକ ଥାଆନ୍ତି । ସେମାନେ ସାଧାରଣ ପୋଷାକ ପିନ୍ଧିଥାନ୍ତି । ଘୁମୁରା ଗୀତକୁ ତାଳ ଧରି ଗାଆନ୍ତି । ପ୍ରତ୍ୟେକ ପଦର ଶେଷରେ ନିଶାଣ ଓ ଘୁମୁରା ବାଜେ । ବାଜା ସଙ୍ଗରେ ନାଚ ଆରମ୍ଭ ହୋଇଯାଏ ।

ଘୁମୁରା ନାଚରେ ଏହି ନାଚ ପାଇଁ ଅଲଗା କରି ଭଙ୍ଗା ହୋଇଥିବା ଗୀତ ବୋଲାଯାଏ ।

ଗାୟକ ଆଗେ ଦେବୀ ଦେବତାମାନଙ୍କର ଜଣାଣ ଗାଏ । ତାପରେ ସାଧାରଣ ମଣିଷ ଜୀବନର ସୁଖ ଦୁଃଖ, ପ୍ରେମ, ବିରହ, ମିଳନ, ହସଖୁସିର ଗୀତ ଗାଏ । ବେଳେ ବେଳେ ସମାଜର, ଶାସନର ରୀତିନୀତିକୁ ସମାଲୋଚନା କରି ଗୀତ ବୋଲି ହୁଏ ।

ଏହି ଗୀତଗୁଡ଼ିକ କିଏ କେବେ ଲେଖିଲା ତାର ଠିକଣା ନାହିଁ ।

ଗୀତରେ ସବୁବେଳେ ସ୍ଥାନୀୟ ଭାଷା ବ୍ୟବହାର କରା-ଯାଇଥାଏ । ତେଣୁ ଏହା ସମସ୍ତଙ୍କ ମନକୁ ଛୁଏ । ସମସ୍ତେ ଏ ଗୀତ ବୁଝିପାରନ୍ତି ।

ଗାୟକ ବେଳେ ବେଳେ ଚଉତିଶା, ଛାନ୍ଦ ଓ ଚଉପଦୀ-ମାନ ଗାଇ ନିଜର ପଣ୍ଡିତପଣିଆ ଦେଖାଇଥାଏ ।

## ଘୁମୁରା ବାଜାର କିମ୍ବଦନ୍ତୀ

କଳାହାଣ୍ଡିରେ ଆଗେ ରଜା ମହାରଜାମାନେ ରାଜୁତି କରୁଥିଲେ । ସେମାନଙ୍କର ରାଜଧାନୀ ଥିଲା 'ଜୁନାଗଡ଼' । ଗଡ଼ର ଦେବୀ ଥିଲେ 'ଲଙ୍କେଶ୍ୱରୀ' ।

ଏବେ ମଧ୍ୟ କଳାହାଣ୍ଡି ଜିଲ୍ଲାର ଅନେକ ଗାଁରେ ଲଙ୍କେଶ୍ୱରୀ ଦେବୀଙ୍କୁ 'ଗ୍ରାମଦେବୀ' ରୂପେ ପୂଜା କରାଯାଏ । ଜୁନାଗଡ଼ରେ ଗଙ୍ଗ ରାଜାମାନେ ରାଜୁତି କଲାବେଳେ 'ଲଙ୍କେଶ୍ୱରୀ' ଇଷ୍ଟଦେବୀ ରୂପେ ପୂଜା ପାଉଥିଲେ ।

ଜୁନାଗଡ଼ର ଶେଷ ଗଙ୍ଗରାଜାଙ୍କ ପୁଅ ନ ଥିଲେ । ତେଣୁ ସେ ନାଗବଂଶର ଜଣେ ଯୁବକଙ୍କୁ ନିଜର ଝିଅ ଓ ରାଜ୍ୟ ଦାନ କଲେ । ନାଗବଂଶର ରାଜା ଫତେ ନାରାୟଣ ଦେବ ଜୁନାଗଡ଼ରୁ ଭବାନୀପାଟଣା ସହରକୁ ରାଜଧାନୀ ଉଠାଇ ଆଣିଲେ ।

ଲଙ୍କେଶ୍ୱରୀଙ୍କ ପ୍ରିୟ ବାଜା ଥିଲା ଘୁମ୍‌ରା ।

ଲଙ୍କାର ରାଜା ରାବଣ ପ୍ରଥମେ ଘୁମ୍‌ରାବାଜା ସାହାଯ୍ୟରେ ଦେବୀ ଲଙ୍କେଶ୍ୱରୀଙ୍କ ସେବା ପୂଜା କରୁଥିଲେ । ଘୁମୁରାବାଜା ବାଜିଲେ ନାକି ଲଙ୍କେଶ୍ୱରୀ ବାଳିକା ବେଶରେ ଆସି ଘୁମୁରା ନାଚରେ ଯୋଗ ଦେଉଥିଲେ ବୋଲି କୁହାଯାଏ । ଖାଲି ସେତିକି ନୁହେଁ, ଦେବୀ 'ଘୁମୁରା'କୁ ଶକ୍ତିଶାଳୀ କରୁଥିଲେ ।

ଘୁମ୍‌ରା ବାଜା ବଜାଇ ରାବଣ ରାଜ୍ୟ ଅଭିଯାନରେ ବାହାରୁଥିଲା । ଏହି ବାଜା ଶୁଣିଲେ ରାଜା ମହାରାଜାମାନେ ଥରହର ହେଉଥିଲେ । ସେମାନଙ୍କ ମଥାର ମୁକୁଟ ଓଲେ ପଡ଼ିଯାଉଥିଲା । ଭୟରେ ସେମାନେ ରାବଣର ଅଧୀନ ହୋଇ ଯାଉଥିଲେ ।

## ଘୁମୁରା ବାଜା ଓ 'ବଙ୍କା' ଜାତି

ଘୁମୁରା ନାଚରେ କଳାହାଣ୍ଡି ଅଞ୍ଚଳର 'ବଙ୍କା' ଜାତିର ଲୋକମାନେ ବିଶେଷ ଭାଗ ନେଇଥାନ୍ତି । ବଙ୍କା ଜାତିର ଲୋକମାନେ ବହୁକାଳରୁ କଳାହାଣ୍ଡି ଅଞ୍ଚଳରେ ବାସକରି ଆସୁଛନ୍ତି ।

କେହି କେହି କହନ୍ତି, ଏହି 'ବଙ୍କା' ଜାତିର ଲୋକମାନେ ଆଗେ ସୋନପୁର ରାଜ୍ୟର 'ବିନ୍‌କା' ଅଞ୍ଚଳରୁ ଆସିଥିଲେ ।

ସୋନପୁରକୁ ଆଗେ ପଶ୍ଚିମ ଲଙ୍କା କୁହାଯାଉଥିଲା । ସୋନପୁରର ଅଧିଷ୍ଠାତ୍ରୀ ଦେବୀ ଥିଲେ ଲଙ୍କେଶ୍ୱରୀ । ପୁଣି ବିନକାର ପୁରାତନ ନାଁ ଥିଲା 'ବିଲଙ୍କା' ବିନକାରେ 'ବି'

ସଲଙ୍କେଶ୍ୱରୀ ପୂଜା ଯାଉଥିଲେ । ବଙ୍କା (ହରିଜନ) ଜାତିର ଲୋକମାନେ ସେମାନଙ୍କ ପର୍ବ ବାସଭୂମି ବଲାଙ୍ଗୀରୁ ସେବା ପୂଜାବିଧି ଶିଖି ଆସିଥିଲେ । ଏମାନେ କଳାହାଣ୍ଡି ଅଞ୍ଚଳରେ ବାସ କରିବା ପରେ, ଘୁମୁରା ବଜାଇ ଦେବୀ ଲଙ୍କେଶ୍ୱରୀଙ୍କୁ ସେବା କଲେ ।

## ଘୁମୁରା ନାଚର ପ୍ରତିଯୋଗିତା

ନୂଆଖାଇ ଦିନ କଳାହାଣ୍ଡି ଅଞ୍ଚଳରେ ଘୁମୁରା ନାଚ ଆରମ୍ଭ ହୁଏ । ଏହାପରେ ପନ୍ଦରଦିନ ଯାଏ ନାଚ ଚାଲେ ।

ନୂଆଖାଇ ଦିନ ଘୁମୁରା ଦଳ ବାଜାବଜାଇ, ନାଚି ନାଚି ଗାଁ ବୁଲି ବାହାରନ୍ତି । ଏମାନେ ଅନେକ ଗାଁ ବୁଲନ୍ତି । ଅଶ୍ୱିଣମାସର ଦଶହରା ପୂଜାବେଳେ ପ୍ରତି ଦେବୀ ମନ୍ଦିରରୁ ଏମାନଙ୍କୁ ଡାକରା ଆସେ ।

ମନ୍ଦିର ଆଗରେ ଘୁମୁରା ଦଳ ନାଚନ୍ତି । ସେଠାରେ ଘୁମୁରା ନାଚର ପ୍ରତିଯୋଗିତା ବି ହୁଏ । ଗାଁର ଲୋକମାନେ ପ୍ରତିଯୋଗିତାର ଆୟୋଜନ କରିଥାନ୍ତି । ଗୀତରେ ଓ ନାଚରେ ଯେଉଁ ଦଳ ଜିତେ, ସେହି ଦଳକୁ ପୁରସ୍କାର ମିଳିଥାଏ । ଏଥିରେ ଘୁମୁରା ଦଳ ଖୁସି ହୋଇ ଆହୁରି ଭଲ କରିବାପାଇଁ ଆଗ୍ରହୀ ହୁଅନ୍ତି ।

## ଘୁମୁରା ନାଚର ଆଉ କେତୋଟି କଥା

ଘୁମୁରା ନାଚ ଏବେ ଆଉ କଳାହାଣ୍ଡି ଭିତରେ ରହି ନାହିଁ । ଏହା ବଲାଙ୍ଗୀର ଓ କଳାହାଣ୍ଡିର ଆଉ କେତେକ ପାଖଆଖ ଅଞ୍ଚଳରେ ବି ଦେଖାଦେଇଛି ।

ଏ ନାଚ. ନୂଆଖାଇଠାରୁ ଦଶହରା ଯାଏ କେବଳ ନ ହୋଇ, ଆଦିବାସୀମାନଙ୍କ 'ବାଲିଯାତ୍ରା' ପରବରେ ଓ ବିବାହ ଉତ୍ସବବେଳେ କରାଯାଉଛି ।

ଏଠାରେ କହି ରଖିବା ଉଚିତ ଯେ, ଭଲ ଫସଲ ପାଇବା ପାଇଁ ଆଦିବାସୀମାନେ 'ବାଲିଯାତ୍ରା' କରନ୍ତି । ବାଲିରେ ଧାନ ଗହମ ବୁଣି କଳାହାଣ୍ଡି ଅଞ୍ଚଳର ଆଦିବାସୀମାନେ ଦେବୀ ଦେବତାଙ୍କ ପୂଜା କରନ୍ତି । ଏହା ନଅଦିନ ଯାଏ ଚାଲେ । ଏହି ନଅଦିନ ଯାଏ, ଆଦିବାସୀ ଯୁବକମାନେ ଘୁମୁରା ନାଚ କରିଥାନ୍ତି ।

ବିବାହ ବେଳେ 'ବାଙ୍କା' ଛଡ଼ା ଅନ୍ୟ ଜାତିର ଯୁବକମାନେ ଘୁମୁରା ନାଚ ଗୀତ କରୁଥିବା ଜଣାଯାଏ ।

'ଘୁମୁରା ନାଚ' ଜାତି ଅଜାତି ଆଦିବାସୀ ଓ ଅଣଆଦିବାସୀ ବଡ଼ସାନ ଭେଦ ଦୂରକରି ସମସ୍ତଙ୍କୁ ଏକାଠି କରିବାରେ ସାହାଯ୍ୟ କରୁଛି ।

କେନ୍ଦୁଝର ଜିଲ୍ଲାରେ ଭୂୟାଁ, ଜୁଆଙ୍ଗ, ଶବର, ହରିଜନ ଓ ବାଥୁଡ଼ି ସମାଜରେ ଘୁମୁରା ନାଚ ଦେଖିବାକୁ ମିଳୁଛି ।

ଜୁଆଙ୍ଗ ଭୂୟାଁମାନେ ନୂଆଖିଆ ଓ ପୁଷ୍‌ପୁନେଇବେଳେ ଘୁମୁରା ନାଚ ନାଚି ନାଚି କେନ୍ଦୁଝର ରାଜାଙ୍କୁ ଫଳ ଭେଟି ଦେବାକୁ ଯାଉଥିଲେ । ରାଜାରାଜୁଡ଼ା ଶାସନ ଉଠିଯିବା ପରେ, ଏମାନେ ଏବେ ନିଜ ପୀଢ଼ର ସର୍ଦ୍ଦାରଙ୍କୁ ଭେଟି ଦେବାକୁ ଯାଉଛନ୍ତି ଓ ଘୁମୁରା ନାଚ କରୁଛନ୍ତି । ଘୁମୁରା ନାଚିଲାବେଳେ ଗାଉଛନ୍ତି—

"କଉମ ପଡ଼ିଲେ ମୋର
ଶମ୍ଭୁ ପନେଇରେ ମୁଁ କରେ ଘର
ମୋ କାନ୍ଦୁଆ ମଲ୍ଲୀ
ଠାକୁର ଡୋହିଲେ ଘର
ମୋ କାନ୍ଦୁଆ ମଲ୍ଲୀ ।"...

# ଘୁମୁରା ନାଚରେ ପରିବର୍ତ୍ତନ

ଆଗେ ଘୁମୁରା ନାଚ ବିକ୍ରୀ ହେଉନଥିଲା । କଳାକାରମାନେ ନିଜର ଓ ଗାଁବାଲାଙ୍କର ଆନନ୍ଦପାଇଁ ଘୁମୁରା ନାଚ ନାଚୁଥିଲେ । ଘୁମୁରା ନାଚ ଦେଖାଇ ପଇସା ଆଣିବା ଲୋଭ ନ ଥିଲା । ଯିଏ ଯାହା ବକ୍‌ସିସ୍‌ ଦେଉଥିଲେ, ନାଚୁଆ ଦଳ ତହିଁରେ ସନ୍ତୋଷିତ ହୋଇ ମଉଜ କରୁଥିଲେ ।

ପରେ ଏହା ବଦଳିବାକୁ ବସିଛି । ଘୁମୁରା ନାଚର ଆଦର ଦେଖି, ଲୋକେ ଏ ନାଚକୁ ନେଇ ବ୍ୟବସାୟ ଆରମ୍ଭ କରିଛନ୍ତି । ପୁରୁଷମାନଙ୍କ ଏ ନାଚରେ ବାଳକମାନେ ସ୍ତ୍ରୀ ବେଶ ହୋଇ ଘୁମୁରା ଗୀତ ଗାଉଛନ୍ତି, ଘୁମୁରା ନାଚ ନାଚୁଛନ୍ତି ।

ଘୁମୁରା ନାଚରେ ଘୁମୁରା ଓ ନିଶାଣ ବାଜା ସଙ୍ଗରେ ମର୍ଦ୍ଦଳ, ବଇଁଶୀ, ଘୁଡୁକା ଆଦି ବାଜା ବାଜୁଛି ।

ଗୀତରେ ଆଦିରସ ଅଧିକ ରହୁଛି ।

ନୂଆଖାଇଠାରୁ ଦଶହରା ଯାଏ ଏ ନାଚ ଆଉ ସୀମିତ ହୋଇ ରହୁନାହିଁ । ଗମ୍ଭା ପୁନେଇର ପନ୍ଦରଦିନ ଆଗରୁ ବି ଏହା ଆରମ୍ଭ ହୋଇ ଗମ୍ଭା ପୁନେଇ ଦିନ ଶେଷ ହେଉଛି ।

ଏହି ଆଧୁନିକ ଘୁମୁରା ନାଚରେ ସ୍ତ୍ରୀ ପୁରୁଷ ଉଭୟେ ଭାଗ ନେଇ ଗାଉଛନ୍ତି—

"ତେଇଁ ପଡ଼ିବାକୁ ଗୁଞ୍ଜି ରିବାଡ଼ରେ
ଗଡ଼ିଦୁଆର
ଗୋଡ଼ ମୁଦ ହେଲା କାଳ—
ଜୀବ ଧନରେ । ୧ ।

ବୁଢ଼ା ଘଇଁଚାକୁ ଟେକରେ ବାନ୍ଧୁ
ଜୀବ ଧନରେ
କାନ୍ଧିକ ବାହୁନ କାନ୍ଦୁ ,
ଜୀବ ଧନରେ । ୨ ।

ଲିଆ ଭୁଜଦେଲ ଖରେ
ପିଣ୍ଡାଟା ଉପରେ ବସି ମରୁଛୁ
ଉଠିକରି ଗୀତ ଗାଅ—
ଜୀବ ଧନରେ । ୩ ।

ଢିଙ୍କିରେ କୁଟିଲ ଚୁଡ଼ା
ବଜାଅ ଘୁମୁରା ନ'ଖଣ୍ଡ ହୁଉ
କ ଛ'ଖଣ୍ଡ ହେଉ
ଜୀବ ଧନରେ ।
ଘୁମୁରାଅ ଭଲ ଥାଉ
ଜୀବ ଧନରେ । ୪ ।

ଏ ନାଚ ଆଉ କଳାହାଣ୍ଡିର ହୋଇ ରହି ନାହିଁ । ଅନେକ ଅଞ୍ଚଳ ବୁଲିଲାଣି । ରାଜ୍ୟ ସରକାର ଏ ନାଚକୁ ଦିଲ୍ଲୀ ଯାଏ ପଠାଇଲେଣି ।

ଏଥିରୁ ଘୁମୁରା ନାଚର ଆଦର କେତେ, ଏ କଥା ସହଜରେ ଜଣାଯିବ ।



## ମାନ୍ଦଲ ନାଚ

ଆମ ଓଡ଼ିଶାରେ ଆଦିବାସୀମାନେ ବହୁ ସଂଖ୍ୟାରେ ରହନ୍ତି । ଜନଗଣନାରୁ ଜଣାପଡ଼େ, ଓଡ଼ିଶାରେ ପ୍ରତି ଚାରିଜଣରେ ଜଣେ ଆଦିବାସୀ । ପୂର୍ବ ଓଡ଼ିଶାଠାରୁ ପଶ୍ଚିମ ଓଡ଼ିଶାରେ ଏମାନଙ୍କ ସଂଖ୍ୟା ଅଧିକ ।

'ଗଣ୍ଡ' ଜାତିର ଲୋକମାନେ ଆଦିବାସୀ ସମାଜର । ଓଡ଼ିଶାର ପ୍ରାୟ ସବୁ ଜିଲ୍ଲାରେ ଏମାନେ ରହନ୍ତି । ତେବେ କଳାହାଣ୍ଡି ଅଞ୍ଚଳରେ ଗଣ୍ଡମାନେ ବହୁ ସଂଖ୍ୟାରେ ରହନ୍ତି ।

କଳାହାଣ୍ଡିର ଗଣ୍ଡମାନେ 'ମାଦଳ ନାଚ' କରନ୍ତି ।

ନାଚରେ ମାଦଳ ବାଜା ବଜା ହେଉଥିବାରୁ ନାଚର ନାମ ମାଦଳ ନାଚ ।



ମାଦଳ

'ମାଦଳ' ଦେଖିବାକୁ ମୃଦଙ୍ଗ ପରି । ମୃଦଙ୍ଗର ମୁହଁ ସାନ । କିନ୍ତୁ ମାଦଳର ମୁହଁ ଟିକିଏ ବଡ଼ । ଏହା ମାଟିରେ ତିଆରି ହୋଇଥାଏ । ମୁହଁ ନ ଥିବା କଳସ ପରି ଦେଖାଯାଏ । ଦୁଇ ମୁହଁରେ ଚମଡ଼ା ଛାଉଣି ଗାଯାଇଥାଏ । ଏହି ଚମଡ଼ାକୁ ଭିଡ଼ି ରଖିବାପାଇଁ ଦୁଇ ମୁହଁକୁ ଓ ମାଟିପାତ୍ରକୁ ଚମଡ଼ା ଫିତାରେ ଭିଡ଼ାଯାଇ ଥାଏ ।

ମାଦଲକୁ ଦୁଇହାତରେ ବଜାଯାଏ । ଏଥିରୁ ଖୁବ୍ ସୁନ୍ଦର ଶବଦ ବାହାରେ ।

'ମାଦଲ ନାଚ'ରେ ମାଦଲ ସାଙ୍ଗକୁ ଛୋଟ 'ନାଗରା' ଓ 'କଟୁଆ' ମଧ୍ୟ ଲାଗେ ।

ନାଗରା ମହୁରୀ ପରି ଏକ ବାଜା । ମାଦଲ ନାଚରେ ନାଚୁଥିବା ଜଣେ କଳାକାର ଏହାକୁ ବଜାନ୍ତି । ଏଥିରୁ ସୁନ୍ଦର ଧ୍ୱନି ବାହାରେ ।



ମାଦଲ ନାଚରେ ଜଣେ ଗାୟକ ବା ଗାନାବାଲା ଥାଏ । ସେ ମାଦଲ ନାଚର ଗୀତ ଗାଏ । ଗୀତ ଗାଇଲାବେଳେ ହାତରେ କଟୁଆ ଧରିଥାଏ ।

## କଟୁଆ

ଏହା ଏକ ଲମ୍ବ ଓ ସିଧା କାଠପଟା ।

କାଠପଟାକୁ ପାଲସ୍ କରି ତେଲମାଖି ରଖାଯାଇଥାଏ । ମାଦଲ ନାଚରେ ଗାନାବାଲା ଏହାକୁ ଧୀରେ ଧୀରେ ହଲାଇ ଗୀତ ଗାଏ ।

କଣ୍ଟୁଆ ସାଧାରଣ କାଠପଟାଟିଏ ହୋଇଥିଲେ ବି ଏଥିରୁ ଶବ୍ଦ ବାହାରେ ନାହିଁ । ତେବେ ଗାନାବାଲା 'କଣ୍ଟୁଆ'କୁ ହଲାଇ ହଲାଇ ଗୀତ ଗାଇଲା ବେଳେ, ଗୀତଗୁଡ଼ିକ ଜମିଗଲା ପରି ଲାଗେ ।

## ମାଦଳିଆ

ମାଦଳ ବଜାଇ ନାଚୁଥିବା ଲୋକକୁ ମାଦଳିଆ କୁହାଯାଏ ।



ମାଦଳିଆ ସୁନ୍ଦର ବେଶଭୁଷଣ ହୋଇ ନାଚିବାକୁ ଆସେ । ସେ ମୁଣ୍ଡରେ ଲମ୍ବାପାଟ ଭିଡ଼େ । ପାଗରେ 'ମୟୂର ଝାଲ' (ମୟୂରଚୂଳ) ଲଗାଇଥାଏ । ନାଚିଲାବେଳେ ଏହି ମୟୂରଝାଲ ହଲି ଦୋହଲି ନାଚର ଶୋଭା ବଢ଼ାଏ । ଅଣ୍ଟାରେ ସେ ଘୁଲ୍ ଘୁଲା (ଛୋଟ ଘାଗୁଡ଼ି) ମାଳ ଭିଡ଼ିଥାଏ । ନାଚିଲାବେଳେ ଏଥିରୁ 'ଠିଣି ଠିଣି' ଶବ୍ଦ ହୁଏ ।

## ଗାୟକ

ମାଦଲ ନାଚରେ ଜଣେ ମାତ୍ର ଗାୟକ ବା ଗାନାବାଲା ଥାଏ । ସେ ସାଧାରଣ ବେଶରେ ଥାଏ । ହାତରେ କଣ୍ଟିଆକୁ ହଲାଇ ହଲାଇ ଗୀତ ଗାଏ । ଗୀତ ଲହରିଆ ହେଲେ, ହାତର କଣ୍ଟିଆ ଅଟକି ଯାଏ ।

## ମାଦଲ ନାଚର ଗୀତ

ମାଦଲ ନାଚରେ ଆଗେ ଦେବୀ ଦେବତାଙ୍କ ଡ଼ାକ ସ୍ତୁତି ଓ ଜଣାଣ ବୋଲାଯାଏ ।

ତା'ପରେ ପ୍ରେମ ଗୀତର କୁଆର ଉଠେ ।

ପ୍ରେମ ଗୀତ ସଙ୍ଗରେ ସମାଜ ଓ ପ୍ରକୃତି ବର୍ଣ୍ଣନା ଥାଏ ।

ଏ ଗୀତର ଭାଷା ସରଳ । ଏ ଗୀତର ଭାବ ସୁନ୍ଦର । ଏହା ସ୍ଥାନୀୟ ଭାଷାରେ ବୋଲାଯାଏ । ତେଣୁ ସମସ୍ତେ ବୁଝିପାରନ୍ତି ।

ମାଦଲ ନାଚର ଅଲଗା ଗୀତ ଅଛି । ତାର ସ୍ୱର ଓ ଲହର ବି ଅଲଗା । ତାଲୁ ଗଣ୍ଡ୍ରାନ୍ତର କବିମାନେ ଫାନ୍ଦି ଥାଆନ୍ତି । ମାଦଲ ନାଚରେ ସେହି ମାଦଲ ଗୀତମାନ ବୋଲାଯାଏ । କେବେ କେବେ ଗାୟକ ନିଜ ମନରୁ ଯୋଡ଼ି ଗୀତ ବୋଲେ । ଦେଖଣାହାରୀଙ୍କ ଭିତରୁ କାହା ନାଁରେ ଗୀତ ଯୋଡ଼ି ଗାଇଲେ ଭାରି ମଜା ହୁଏ । ଲୋକେ ତାଳିମାରି ବାହା ବାହା କହନ୍ତି ।

ବିବାହବେଳେ ଯେଉଁ ମାଦଲ ନାଚ ହୁଏ, ଉହିଁରେ ଗାୟକ ବାଛି ବାଛି ପ୍ରେମ ଗୀତମାନ ଗାଏ । ଏ ଗୀତ ବିବାହବେଳାକୁ ଅଧିକ ସରସ ଓ ମଧୁର କରେ । ଏଥିରେ ସାଧାରଣତଃ ପୁରୁଷ ଓ ସ୍ତ୍ରୀମାନଙ୍କର ପ୍ରେମ ଗୀତ ବୋଲାଯାଏ ।

## ମାଦଳ ନାଚ

ମାଦଳ ନାଚରେ ପୁରୁଷ ଓ ସ୍ତ୍ରୀମାନେ ନାଚନ୍ତି ।

ପୁରୁଷମାନେ ପାଗଭିଡ଼ି, ମାଦଳ ବଜାଇ ନାଚନ୍ତି । ସ୍ତ୍ରୀମାନେ ଶାଢ଼ୀ ପିନ୍ଧି ନାଚନ୍ତି ।



ଗାୟକ ହାତରେ କଣ୍ଢ଼ିଆ ଧରି ଗୀତ ଗାଏ ।

ମାଦଳ ସଙ୍ଗରେ 'ନାଗରା' ବି' ବାଜେ ।

ମାଦଳ ନାଚରେ ଅନେକ ମାଦଳିଆ ଏକାଠି ନାଚନ୍ତି । ଏମାନେ ଗାୟକକୁ ମଝିରେ ରଖି ଗୋଲେଇ ହୋଇ ନାଚନ୍ତି । ବେଳେ ବେଳେ ସେମାନେ ଅଧା ଗୋଲେଇ କରି ଓ ଧାଡ଼ିବାନ୍ଧି ନାଚିବାର ଦେଖାଯାଏ । ସ୍ତ୍ରୀମାନେ ଅଲଗା ଧାଡ଼ିରେ ନାଚନ୍ତି । ମାଦଳ ନାଚରେ ଜଣେ ମାତ୍ର ଗାୟକ ଗୀତ ଗାଏ । ଅନ୍ୟମାନେ ନାଚନ୍ତି ।

ମାଦଳ ନାଚରେ ମାଦଳିଆମାନେ ଯେତେବେଳେ ବୈଠକି ନାଚ କରନ୍ତି, ସେତେବେଳେ ଖୁବ୍ ମଜା ହୁଏ ।

ସେମାନେ କେତେବେଳେ ମାଦଲ ବଜାଉ ବଜାଉ ଘିର ଘିର ହୋଇ ଘୂରିବୁଲନ୍ତି ତ ଆଉ କେତେବେଳେ ଆଣ୍ଠୁ ଭାଙ୍ଗି ଅଧାବସି ଅଧା ଛିଡ଼ାହୋଇ ନାଚନ୍ତି ।

ମାଦଲ ଦାଦରା ତାଳରେ ତିନିମାତ୍ରାରେ ବାଜେ । ମାଦଲ ଓ ନାଗରା ଶବଦରେ ସାରା ଅଞ୍ଚଳ ପୂରିଯାଏ । ଏହା ଶୁଣି ପାଖ ଆଖର ଗାଁଲୋକେ ନାଚ ଦେଖିବାକୁ ଚାଲି ଆସନ୍ତି ।

'ମାଦଲ ନାଚ' ବିବାହବେଳେ ଓ ପୂଜା ପରବରେ କରାଯାଏ । କଳାହାଣ୍ଡି ଜିଲ୍ଲାର ସବୁ ଖଣ୍ଡ ଗାଁରେ 'ମାଦଲ ନାଚ' ଦଳ ଥାଆନ୍ତି ।

## ଆଉ କେତେକ କଥା

କଳାହାଣ୍ଡି ଅଞ୍ଚଳ ଛଡ଼ା ଓଡ଼ିଶାର ଅନ୍ୟ କେତେକ ଅଞ୍ଚଳରେ ବି ମାଦଲ ନାଚ ହୁଏ । କିନ୍ତୁ କଳାହାଣ୍ଡିର ଗଣ୍ଡ ସମାଜର ମାଦଲ ନାଚ ଭିନେ ଧରଣର । ଏପରି ନାଚ ଅନ୍ୟ କେଉଁଠି ହୁଏ ନାହିଁ ।

ସୁନ୍ଦରଗଡ଼ ଅଞ୍ଚଳରେ ଓରାଂମାନେ ବି ମାଦଲ ବଜାଇ ନାଚଥାଆନ୍ତି କିନ୍ତୁ ତାକୁ ମାଦଲ ନାଚ ନ କହି 'ମାଦଲ ବାଜା' ବୋଲି କହିବାକୁ ହେବ ।

ଆଦିବାସୀ ଗଣ୍ଡମାନଙ୍କ ପରି ମାଦଲ ମଧ୍ୟ ଏକ ଅତି ପୁରାତନ ବାଜା । ଏହାକୁ ସ୍ଥାନୀୟ ଲୋକେ ତିଆରି କରନ୍ତି । ମାଦଲ 'ନାଗରା' ବି ସ୍ଥାନୀୟ ଲୋକଙ୍କ ହାତ ତିଆରି ବାଜା ।

ମାଦଲ ନାଚ କଳାହାଣ୍ଡି ଗଣ୍ଡ ସମାଜର ଅତି ପ୍ରିୟ ନାଚ । ପିଲାମାନେ ବଡ଼ମାନଙ୍କଠାରୁ ମାଦଲ ବାଜା ଓ ମାଦଲ ନାଚ ଶିଖନ୍ତି । ବଡ଼ହୋଇ ସେହିପରି ନାଚନ୍ତି ଓ ବଜାନ୍ତି । ପିଲାମାନେ ଦେଖି ଦେଖି ବଜାଇ ଶିଖନ୍ତି । ଏବେ ଗଣ୍ଡ ସମାଜର ଲୋକେ ମାଦଲ ନାଚରେ ସ୍ତ୍ରୀମାନଙ୍କୁ ନାଚିବାକୁ ବାରଣ କରୁଛନ୍ତି ।